# ଟିକି ଟିକି ଗୀତ



ଓଡ଼ିଶା ବୁକ୍ ଷ୍ଟୋର

# ଟିକି ଟିକି ଗୀତ

ରଚନା

ଶୀମତୀ ଲତାଦେବୀ ପାତ୍ର

ଶୀ ଗୋବିନ୍ଦ ଚରଣ ପାତ୍ର

ସଂପାଦନା

ଶ୍ରୀ ଅଶୋକ ଦାଶ



ଓଡ଼ିଶା ବୁକ୍ ଷ୍ଟୋର

# ଟିକି ଟିକି ଗୀତ

ରଚନା :
ଶ୍ରୀମତୀ ଲତାଦେବୀ ପାତ୍ର
ଶ୍ରୀ ଗୋବିନ୍ଦ ଚରଣ ପାତ୍ର
ପ୍ରକାଶକ :
ଓଡ଼ିଶା ବୁକ୍ ଷ୍ଟୋର
ବିନୋଦ ବିହାରୀ, କଟକ - ୨
ସଂପାଦନା :
ଶ୍ରୀ ଅଶୋକ ଦାଶ
ପ୍ରଥମ ପ୍ରକାଶ : ୧୯୯୧
ଦ୍ୱିତୀୟ ମୁଦ୍ରଣ : ୧୯୯୫
ମୁଦ୍ରଣ :
ପଞ୍ଚସଖା ଅଫ୍‌ସେଟ୍, କଟକ.

# TIKI TIKI GITA

by
Srimati Latadevi Patra
Sri Gobinda Charan Patra

Published by
**Orissa Book Store,**
Binod Behari, Cuttack -2.

2nd Edition : 1995

Price : Rs.10/-
ISBN 81 - 7400 - 100 - X

---

## କେଉଁ ଗୀତ କେଉଁ ପୃଷ୍ଠାରେ :





# ଭାରତ ଜନନୀ ବନ୍ଦନା

ଜୟ ମା ଭାରତ ଜନନୀ
କୀର୍ତ୍ତି କୁସୁମ ଦଳମାଳିକା
ଅନୁଗତ ସୁତ ତୋର ବନ୍ଦେ
ଆଜି ନବ ଛନ୍ଦେ
ଜନନୀ ତୋ ଜୟ ଜୟ ଗୀତିକା । ( ୧ )



(ଜାତୀୟ ପତାକା ତଳେ ଭାରତ ଜନନୀ [illegible] )

ଶସ୍ୟ ଶ୍ୟାମଳା ତୁ ମା ସୁଜଳା ସୁଫଳା
ରଞ୍ଜିତ ନଦ ନଦୀ ସୁରୁଚିର ମେଖଳା

ଗିରି ବନ- ସାଗର - ସେବିତ ଶରୀରା ମା
ସରିତ ବୀର ଯଶ ପାଳିକା । (୨)

ପୁଣ୍ୟ ଜନନୀ ତୁ ମା ପୁଣ୍ୟ ନିଳୟା
ଶତ୍ରୁ ରକତ ରାଗ ରଞ୍ଜିତ ଦେହା ।

ସୁର ଜନନୀ ତୁହି, ଚିର ଗରିମାମୟୀ
କୀର୍ତ୍ତି କୁସୁମ ଦଳମାଳିକା । (୩)





# ଶିଶୁ ଓ ପ୍ରଜାପତି

ଶିଶୁ - ନ ଫିଟୁ ସିନ୍ଦୂରା ନ ହେଉ ପ୍ରଭାତ
ଆରେ ଟିକି ପ୍ରଜାପତି
କେଉଁ ଦୂର ପଥୁଁ ଉଡ଼ି ଆସୁଚୁରେ
ନିତି ନିତି ଫୁଲ କତି ।
ଏ ଫୁଲେ ସେ ଫୁଲେ ଉଡ଼ି ଉଡ଼ି ବୁଲୁ
କ୍ଷଣେ ତ ନ ରହୁ କାହିଁ
ତୁନି ତୁନି କରି ଫୁଲକାନେ ନିତି
କି ଖବର ଦେଉ କହି ?
କାହିଁ ତୋର ଘର କିଏ ଅଛି ତୋର
କାହିଁ ଖାଉ ଅବା ତୁହି
ଥକି ଯିବଣିତ ଡ଼ୋ କଅଁଳ ଡେଣ
କହିଯାଅ କ୍ଷଣେ ରହି ।

ପ୍ରଜାପତି - ହେ ଶିଶୁ ! ମୋହର ନାହିଁ କାହିଁ ଘର
ନାହିଁ ମୋର ବାପ, ମାଆ,
ବନ ଉପବନ ମୋ ରହିବା ସ୍ଥାନ
ଈଶ୍ୱର ମୋହର ସାହା ।
ଫୁଲ ଦେହେ ମୋର ଜଗତ ଠାକୁର
ଅଛନ୍ତି ଆହାର ରଖି
ସେଥିପାଇଁ ଦୂରୁ ଉଡ଼ିଆସେ ନିତି
ଫୁଲ ବଗିଚାକୁ ଦେଖି ।
ଉଇଁଲେ ତପନ ମଉଳିବ ଫୁଲ
ନ ମିଳିବ ମହୁ ଆଉ

ଦଣ୍ଡେ କଲେ ଡେରି　　　କରମ ଆଦରି

ସହିବି ଭୋକର ଦାଉ ।



( ଝିଅ ଓ ପ୍ରଜାପତିର କଥୋପକଥନ )

ବେଳ ଥାଉଁ ତେଣୁ　　　ଯାଉଛିରେ ପିଲେ

ନ କରିବି କାମେ ହେଳା

ସମୟ ଦେଖି ଯେ　　　ନ କରଇ କାମ୍

ବୁଡ଼ଇ ତାହାର ଭେଳା ।



# ଜହ୍ନ

ଦିଶୁ ଚକାଥାଳି ପରି
ଜହ୍ନମାମୁଁ ତୁହି
ଚକ୍ ଚକ୍ ଦିହ ତୋର
ଝଟକି ଉଠଇ ।



( କୁନା ସହିତ ଖେଳିବା ପାଇଁ ଜହ୍ନମାମୁଁକୁ ମା' ଡାକୁଛନ୍ତି । )

ରାତିରେ ଆକାଶେ ଖେଳୁ
　　　　　　　　ଏକା ହୋଇ ନିତି
ଆସ ଆସ ଖେଳିବୁରେ
　　　　　　　　ଆମ କୁନା ସାଥି ।

ତୋ ସୁନ୍ଦର ମୁହଁ ଦିଶେ
　　　　　　　　କୁନା ମୁହଁ ପରି
ସଙ୍ଗାତ ବସିଲେ ଦୁହେଁ
　　　　　　　　ହେବ ନାହିଁ ବାରି ।

କୁନି କୁନି ଟିକି ହାତ
　　　　　　　　ଦେଇଚି ବଢ଼ାଇ
ଆସ ଆସ ଜହ୍ନମାମୁଁ
　　　　　　　　ଖସି ପଡ଼ ତହିଁ ।





# ବାୟା ଚଢ଼େଇ

ବାୟା ଚଢ଼େଇରେ ବାୟା ଚଢ଼େଇ
ମୋ କୁନି ପାଖକୁ ଆ
ସେ ତ କାନ୍ଦୁ ଅଛି ଅଝଟ ହୋଇଣ
ତାକୁ ଶୋଇଦେଇ ଯା ।



( ତାଳଗଛର ତାଳରେ ବାୟା ଚଢ଼େଇ ବସା ଝୁଲୁଛି । )

ନଈ ସେପାରିରୁ ଆସ ଆରେ ବାୟା
ଆସି ବସ ତାହା ହାତେ
ସେ ତ ମୋର ବଡ଼ ଅବୁଝା ହେଉଚି
ଖେଳିବାକୁ ତୋହ ସାଥେ ।
ଡେଙ୍ଗା ତାଳଗଛ ଆଗେ ଦୋହଲଇ
ବାୟାରେ ତୋହର ବସା
ଝଡ଼ ବରଷାରେ କିପରି ରହୁରେ
ନାହିଁ ତ କେହି ଭରସା ।
କରି ଗରଜନ ବହିଲେ ପବନ
ଥରିବ ତୋହର ଛାତି
ନ ଯାଅ ନ ଯାଅ ବାୟାରେ ତହିଁକି
ରହ ରହ ତାହା କତି ।
ନୂଆ ପିଞ୍ଜରାରେ ରହ ମଉଜରେ
କୁନି ପାଶେ ମୋର ତୁହି
ଖାଇବାକୁ ଦେବ ଦୁଧ ଭାତ ନିତି
ଖେଳୁଥିବ କାନ୍ଧେ ବହି ।



# ଆମ ଗାଆଁ

ଏହି ଆମ ଗାଆଁ ଏହି ମୋର ମାଆ
ଏହି ତ ସରଗ ମୋର
ଯାହାରି କୋଳରେ ଯା ପାଣି ପବନେ
ଗଢ଼ା ମୋ ଟିକି ଶରୀର । ୧।



( ଆମ ଗାଁର ଗୋଟିଏ ଦୃଶ୍ୟ )

ଦେହେ, ଦେହେ ମୋର ଭରିଛି ଶକତି
ସ୍ନେହ, ସୁଧା ଦେଇ ମୋତେ
ଭୁଲି କି ପାରିବି ଜୀବନେ ମୁଁ କେବେ
ତାର ଉପକାର ସତେ । ୨ ।
ଗାଆଁ, ତୋଟାମାନେ ସାଙ୍ଗ, ସାଥି ନେଇ
ଖେଳିଛି ମୁଁ କେତେ ଖେଳ
ଟିକି ପ୍ରଜାପତି ଆନନ୍ଦେ ଧରିଛି
ହୋଇ ମୁହିଁ କୁତୂହଳ । ୩ ।
ମୋ ଗାଆଁ ପୋଖରୀ ଅଟେ ଗଙ୍ଗା ନୀର
ନିରିମଳ ଜଳେ ଭରା
ପୋଖରୀ କୂଳରେ ସୁନ୍ଦର ମନ୍ଦିର
ବିଜେ ନୀଳକଣ୍ଠ ପରା । ୪ ।
ସୁନୀଳ ଆକାଶ ତଳରେ ତ ତହିଁ
ଚାଳ ଛପରର ଘର
ଆହା କି ସୁନ୍ଦର ଦିଶଇ ମୋ ଗାଆଁ
ମଣେ ଅତି ଆପଣାର । ୫ ।
ସାରା ଦୁନିଆରେ ମୋ ଗାଆଁ ପରି
ଅଛି କି କେଉଁଠି କହ ?
ସରଗର ଶୋଭା ଏହା ପାଶେ ତୁଚ୍ଛ
ଗାଆଁ ମୋର ମହନୀୟ । ୬ ।



# ଅଦିନ ମେଘ

ପବନେ ଦୋହଲେ ଲତା ପତର ଲୋ
ଘୋଟି ଆସେ କଳା ମେଘ



( ଆକାଶରେ ମେଘ ଓ ବିଜୁଳି ଦେଖି ଖେଳୁଥିବା ପିଲାମାନେ ନିଜ ନିଜ ଘରକୁ ବାହୁଡୁଛନ୍ତି । )

ଚକ୍ ଚକ୍ ହୋଇ　　　　　　　　ବିଜୁଳି ଚମକେ

ଖେଳ ଭାଙ୍ଗ, ଖେଳ ଭାଙ୍ଗ ।

ସୁଉ ସୁଉ ହୋଇ　　　　　　　　ଗରଜେ ବରଷା

ଶୁଣ ମିତ କାନ ଡେରି

ଭାଙ୍ଗି ପୁଚି ଖେଳ　　　　　　　　ଚାଲିଯିବା ଆସ

ଯେ ଯାହା ଘରକୁ ଫେରି ।

ଆସ ଦିନମଣି　　　　　　　　ଆସଲୋ ମିତଣୀ

ବହିଲାଣି ଥଣ୍ଡା ବାଆ

ଝର ଝର ହୋଇ　　　　　　　　ମେଘ ବରଷିଲେ

ନ ପାଇବା ଆଉ ରାହା ।

ଚାଲ ଯିବା ଧାଇଁ　　　　　　　　ନ ପାରିବ ଛୁଇଁ

ଆମକୁ ବରଷା ଧାର

ଯେଝା ଘର କାମେ　　　　　　　　ଲାଗିବା ସଭିଏଁ

ହେବା ନାହିଁ ହରବର ।



# ସଂଖ୍ୟା

ଏକ ସୂର୍ଯ୍ୟ ଦାନ କରେ
ଧରାକୁ ଆଲୋକ
ଏକ ଚନ୍ଦ୍ର ଅନ୍ଧକାର
ନାଶେ ପୁଣି ଦେଖ ।



( ଗୀତ ମାଧମରେ ସଂଖ୍ୟାଗଣନା ଶିକ୍ଷା )

ଏକ ଧ୍ରୁବତାରା ବାଟ
ଦେଖାଏ ଅନ୍ଧାରେ
ଆକାଶ ଅଟଇ ଏକ
ଦିଶେ ସବୁଠାରେ ।
ହାତ ଦୁଇ ଗୋଡ଼ ଦୁଇ
କାନ ଦୁଇ ମୋର
ଆଖି ଦୁଇ ଥିବାରୁ ମୁଁ
ପଢ଼ଇ ଅକ୍ଷର ।
ଦୁଇ ପୁଡ଼ା ଏକ ନାକ
ଅଛି ଯୋଡ଼ି ହୋଇ
ଦୁଇ ଏକ ମିଶି ତିନି
ଗଣି ଦେଖ ଭାଇ ।
ତିନି କାଠି ଧରିଅଛୁ
ଆମେ ତିନି ଜଣ
ତିନି ରଙ୍ଗ ପତାକାଟି
ଆମ ଦେଶ ଚିହ୍ନ ।
ଦିଗ ଚାରି, ଚାରି ଅଟେ
ହାତ ଗୋଡ଼ ମିଶି
ଚାରି ଗୋଡ଼େ ଧାଉଁଅଛି
ଆମ ପିଲା ପୁଷି ।
ଚାରିବେଦ, ଚତୁର୍ମାସ୍ୟା
ଚାରି ମାସେ ଦେଖ

ଚାରି ମେଳି ହେଲେ
ବାଟ ଚଲା ହୁଏ ସୁଖ ।
ପାଞ୍ଚ ମୋ ହାତ ଆଙ୍ଗୁଠି
ପାଞ୍ଚ ପୁଣି ପାଦେ
ପଞ୍ଚମ ସ୍ୱରରେ ଗାଏ
କୋକିଳ ଆନନ୍ଦେ ।
ଛଅ ଗୋଡ଼ ଭଅଁରର
ଛଅ ଅଟେ ଋତୁ
ସାତ ଗୋଟି ବାର ଅଟେ
ଗଣ କରି ହେତୁ ।
ଆଠ ଧାତୁ, ନଅ ଗ୍ରହ
ଅଛି ଗଣା ହୋଇ
ଦଶ ଦିଗ ଶିଖିଛି ମୁଁ
ଗୁରୁ ଦେଲେ କହି ।





# ମୋ ପୁଷି

ମ୍ୟାଆଉଁ, ମ୍ୟାଆଉଁ ବୋବେଇ
ଟିକି ପୁଷି ରେ ମୋର
ଆସ ଏବେ ମୋର ପାଖକୁ
ଦେହ ଆଉଁଷେ ତୋର ।୧।



( ମୋ ପୁଷି )

ଖାଇବାକୁ ଦେବି ତୋତେ ରେ
ମୁହିଁ ନଡ଼ିଆ ରସ
ଦୁଧ, ଭାତ ତହିଁ ରଖିଛି
ଖାଇ ମଉଜେ ବସ ।୨।
ମୀନ ମାଛ ଧରି ଆଣିଛି
ତୋହ ପାଇଁରେ ମୁହିଁ
ବାପା ଆଣିଛନ୍ତି ମାଉଁସ
ଖାଆ, ଚଞ୍ଚଳ ତୁହି । ୩ ।
ବେକରେ ଘାଘୁଡ଼ି ପିନ୍ଧିଛୁ
ରୁମୁ ଝୁମୁ ବାଜଇ
ଚାଲୁଆ ମୂଷା ସେ ପଳାଏ
ଭୟ ମନରେ ପାଇ । ୪ ।
ମାଆ ରନ୍ଧାବଢ଼ା ସାରିଲେ
ଚୁଲୀମୁଣ୍ଡରେ ବସୁ
ଉଷୁମ ଲାଗଇ ତୋତେରେ
କେବେ ଛାଡ଼ି ନ ଆସୁ । ୫ ।
ଆସ, ଆସ, ଟିକି ପୁଷିରେ
ମୋର ପାଖକୁ ଆସ
ଖାଇବାକୁ ଦେବି ତୋତେ ରେ
ମୁହିଁ ନଡ଼ିଆ ରସ । ୬ ।

କୋଡ଼େ ବସିବାକୁ ମୋହର
କେଡ଼େ ଶରଧା ତୋର
ପାରି ଦେଉଅଛି ବିଛଣା
ଶୁଅ ପୁଷିରେ ମୋର । ୭ ।
ଅଚିହ୍ନା ଲୋକକୁ ଦେଖିଲେ
ଟିକି ପୁଷିରେ ମୋର
ରାମ୍ପୁଡ଼ି ଦେଉ ତ ତାହାକୁ
ନଖ ଧାରେ ତୋହର । ୮ ।
ମୂଷା ଶିକାର ତୋ ଦେଖିଲେ
ମୋତେ ଲାଗଇ ଖୁସି
ବାଘ ମାମୁଁର ତୁ ବନ୍ଧୁଲୋ
ଅଟୁ ପରା ମାଉସୀ । ୯ ।





# ଦିଗ

ଯେଉଁ ଦିଗୁ ସୂର୍ଯ୍ୟ ଉଦୟ ହୁଅନ୍ତି
ନିତି ଦେଖୁଅଛ ଭାଇ
ସେହି ଦିଗଟିକୁ ପୂର୍ବ ଦିଗ ଜାଣ
ସନ୍ଦେହ ନ କର କେହି ।




( ଦିଗ ନିର୍ଣ୍ଣୟ )

କ୍ଷଣେ ସ୍ଥିର ହୋଇ ଠିଆ ହୁଅ ଭାଇ
ପୂର୍ବ ଆଡ଼େ କରି ମୁହଁ
ବାମ ବାହୁ ତୁମ ଉତ୍ତରକୁ ହେବ
ଦକ୍ଷିଣେ ଡାହାଣ ଚାହଁ ।
ପୂର୍ବ ଦିଗେ ଚାହିଁ ଠିଆ ହେଲେ ଭାଇ
ପଶ୍ଚିମକୁ ରହେ ପିଠି
ଅଧ ପୁଣି ତମ ପାଦତଳେ ରହେ
ଊର୍ଦ୍ଧ୍ୱ ଦିଗେ ମୁଣ୍ଡ ଗୋଟି ।
ଜାଣିବାକୁ ଆଗ ଅଭ୍ୟାସ କରିବ
ଏହି ଛଅ ଦିଗ ନାଆଁ
ପଚାରିଲେ ଗୁରୁ କହିବ ବାଳକେ
ତାଙ୍କ ଆଗେ ହୋଇ ଠିଆ ।





# ମହୁମାଛି

ଦେଖ ଦେଖ ମହୁମାଛି
ଫୁଲେ ଫୁଲେ ବୁଲି
ଗୁଣ ଗୁଣ ଗୀତ ଗାଏ
ପବନେ ଦୋହଲି ।



( ଗଛ ଡାଳରେ ଝୁଲୁଥିବା ମହୁଫେଣା ଓ ମହୁମାଛି )

ସଜ ଫୁଲେ ବସି ଦେଖ
ମହୁ ଟାଣି ନିଏ
ଶୁଣ୍ଢ ତାର କେଡ଼େ ସରୁ
ଜଣା ତ ନ ଯାଏ ।
ନିତି ନିତି ଧାଇଁ ଆସେ
ନ ପାହୁଣୁ ରାତି
ମହୁ ନେଇ ଦେଖ ରଖେ
ଭଣ୍ଡାରେ ସାଇତି ।
ଗଛଡାଳେ ଝୁଲୁଅଛି
ଦେଖ ବସା ତାର
ଯାଅ ନାହିଁ ତେଣେ କେହି
ସେ ବଡ଼ ଚତୁର ।
ବେଢ଼ିଯାଇ ବିନ୍ଧି ଦେବେ
ଚାଲ ଯିବା ଫେରି
ତାଙ୍କ ପାଖେ ଆମ ବଳ
ହେବ ନାହିଁ ସରି ।



# ଶିଳ୍ପୀ ପୁଅ

ଶିଳ୍ପୀ ଆମେ ଓଡ଼ିଆ ପୁଅ
ଓଡ଼ିଶା ଆମ ଦେଶ
ଏଇ ଦେଶର ଧରମ ଆମେ
ରଖିବୁ ଆମେ ଯଶ ।



( କାମ କରୁଛି ଶିଳ୍ପୀ ପୁଅ )

ଆମ ହାତର ନିହଣ ବାଜି
ଶତ କୋଣାର୍କ ଉଠିବ ରାଜି
ଗଢ଼ିବୁ କୋଟି ବାରବାଟି
ରଖିବୁ ପଉରୁଷ ।
ଦେଶର ମାନ ଦେଶର ଧନ
ରଖିବା ପାଇଁ ଆମେ କି ହୀନ
ଏଇ ମାଟିରେ ହସି ଉଠିବ
ଆମ ହାତର ଯଶ ।
ଧରମା ଆମେ ଆମର ନାଁ
ଘୋଷିବ ଦିନେ ସାରା ଦୁନିଆଁ
ଶିଳ୍ପୀ ଆମେ ସାହସୀ ଆମେ
ହସାଇ ଦେବୁ ଦେଶ ।





# ସୁନାପିଲା ରମେଶ

ସୁନାପିଲା ରମେଶ  
ମୁହଁ ତାର ହସ ହସ  
ଡଉଲ ତା' ଚେହେରା  
ସଫା ତାର ଲୁଗାପଟା

କାମ ତାର ସରସ  
ଦିଶେ ନାହିଁ ବିରସ ।  
ରହେ ସଫା ସୁତୁରା  
ନ କରେ ସେ କୋତରା ।



( ସୁନାପିଲା ରମେଶ )

କଥା ମାନେ ସବୁରି    କାମ କରେ ପଟାରି
ପଢ଼ାବେଳେ ପଢ଼େ ପାଠ    ଦିଏ ନାହିଁ ପାସୋରି ।
କାମ ତାର ଠିକଣା    କରେ ନାହିଁ ବୋଲଣା
ଯତନରେ ରଖେ ବହି    ନୂଆ ଆଉ ପୁରୁଣା
ବାପା ମାଆ ଭାଇଙ୍କ    ଆଗେ ହୋଇ ସଳଖ
ଠିଆ ହୁଏ ନାହିଁ ସେହି    ଜାଣେ କେତେ ଶୋଳକ ।
ଦୁଷ୍ଟପିଲା ସାଥିରେ    ବସେ ନାହିଁ, ପୋଥିରେ
ମନ ଥାଏ ତାର ସଦା    ଦିନ ଅବା ରାତିରେ ।
ଭିକାରୀକୁ ଦେଖିଲେ    ଡାକେ ତାକୁ ପହିଲେ
ଖାଇବାକୁ ଦିଏ ଆଣି    ବାପା ମାଆ କହିଲେ ।
କରେ ନାହିଁ ଗରବ    ବାପା ଦେଲେ ଦରବ
ସାନ ଭାଇ ଭଉଣୀଙ୍କି    ବାଣ୍ଟି ଦିଏ ସରବ ।



( ଅନ୍ଧ ଲୋକଟିକୁ ରମେଶ ରାସ୍ତା ପାର କରାଉଛି )

ଅନ୍ଧ ହାତ ଧରଇ ବାଟ ପାରି କରଇ
ଦୁଃଖୀକି ଦିଅଇ ଭିକ ଦିଏ ନାହିଁ ଫେରାଇ ।
ବାପା ଘରେ ନ ଥିଲେ ବାହାରୁ କେ ଅଇଲେ
ନମସ୍କାର କରି ବୁଝେ ତାଙ୍କ କାମ ପହିଲେ ।
ରମେଶର ନାଆଁଟି ପ୍ରଥମରୁ ଥାଏଟି
ପରୀକ୍ଷାରେ ଆଗ ଉଠେ ପୁରସ୍କାର ପାଏଟି ।
ମୋଟେ ସାତ ବରଷ କାମଟି ତା' ସରସ
ଅଝଟ ପଣିଆ ନାହିଁ ନାହିଁ ତାର ଅଳସ ।
ସୁନାପିଲା ରମେଶ କଥା କହେ ହରଷ
ସାଇ ପଡ଼ିଶା ସଭିଏ ତା' ଉପରେ ସନ୍ତୋଷ ।



## ଦୁଷ୍ଟପଣିଆ ଛାଡ଼ିବି

ଦୁଷ୍ଟ ପଣିଆ ଛାଡ଼ିବି ମୁହିଁ ନ ହେବି ଦୁଷ୍ଟ ସାଥୀ
ଖେଳିବା ପାଇଁ ନ ଯିବି ମୁହିଁ ଦୁଷ୍ଟ ପଲା କତି ।

ଚଗଲା କରେ ମନକୁ ମୋର ସେ ଅଟେ ବଡ଼ ମନ୍ଦ
ତାହାରି ଲାଗି ଶିଖିଲି ମୁହିଁ କଳହ ହିଂସା ବାଦ ।

ମୋ ସଫା ଦେହ ମଇଳା କଲା ଜାମାକୁ କଲା ମଳି
କଳିଆ ହେଲି ସାଙ୍ଗ ସାଥିରେ ଲଗାଇ ମୁହିଁ କଳି ।



( ଦୁଷ୍ଟ ପଣିଆ ଛାଡ଼ିବାପାଇଁ ଶପଥ )

ସରବେ ମୋତେ　ମନ୍ଦ କହିଲେ　ଭଲ ପାଇଲେ ନାହିଁ
ଦୁଷ୍ଟ ପଣିଆ　ଗୁଣ ତୋହର　ଏବେ ବୁଝିଲି ମୁହିଁ ।

ମୋ ସାଙ୍ଗ ସାଥୀ　ପଢ଼ନ୍ତି ନିତି　ମୁହିଁ ପଢ଼ିବି ପାଠ
ସକାଳ ହେଲେ　ଚାଟଶାଳୀକୁ　ଯିବି ନ କରି ମଠ ।

ଗୁରୁଙ୍କ କଥା　ମାନି ଚଳିବି　ଚାହିଁବି ନାହିଁ ତୋତେ
ଚଗଲା ବୋଲି　କହିବେ ନାହିଁ　କିଏସେ ହେଲେ ମୋତେ ।

ଫତୁଆରି ତୁ　କରିଛୁ ମୋତେ　ମିଛୁଆ ଦେଲୁ କରି
ଚୋରି କଲୁ ତୁ　ମୋ ଭଲଗୁଣ　ତୁ ଅଟୁ ଖଳ ଭାରି ।

ଦୂରରେ ମୁହିଁ　ତୋଠାରୁ ରହି　ଶିଖିଚି ଭଲ ଗୁଣ
ଦୁଷ୍ଟ ହୋଇ　ରହିବି ନାହିଁ　ପାଇଣ ଅପମାନ ।

❒

# ଭାରତ ଆମ ଜନମ ଭୂଇଁ

ଭାରତ ଆମ ଜନମ ଭୂଇଁ
ତା' କୋଳେ ହସି ଖେଳଇ ମୁହିଁ
ତାହାରି ଜଳ
ତାହାରି ଫଳ
ଆମରି ଦେହେ ଦେଉଛି ବଳ ।
ତାହାରି ଦେହେ କେତେ ଯେ ନଈ
ବଣ ପାହାଡ଼ ଅଛଇ ରହି
ସୁନାର କ୍ଷେତ
ଉଡ଼ାଏ ନେତ
ମଳୟ ଯାଏ ମଥାକୁ ଛୁଇଁ ।
ସାରା ଦୁନିଆରେ ଭାରତ ବଡ଼
ସେଇ ଭାରତରେ ଆମରି ଘର
ଦରିଆ ତାର
କେଡ଼େ ସୁନ୍ଦର
କରଇ ନିତି ପାଦେ ଜୁହାର ।
ସୁନାର ଦେଶ ଭାରତ ଆମ
ପଢ଼ିବା ପାଠ କରିବା କାମ
ଆମେ ତା ସୁତ
ଉଡ଼ାଇ ନେତ
ଟେକ ରଖିବା ଦେଶର ନାମ ।



( ଭାରତ ମାତାର ଜୟ ! )

ଗାଅ ଭାରତ ମାତାର ଜୟ
ଗାଅ ଜାତୀୟ ପତାକା ଜୟ
ଆଗେଇ ଚାଲ
ବୋଲରେ ବୋଲ
ଜୟ ଭାରତ ମାତାର ଜୟ !



